# କିପରି ଓ କାହିଁକି ?

















ନମୀତା ଆଚାର୍ଯ୍ୟ




# କିପରି ଓ କାହିଁକି ?

ସଂଗ୍ରାହିକା:
**ନମୀତା ଆଚାର୍ଯ୍ୟ**
ବି.ଏ. ବି.ଇଡ଼ି.

ପ୍ରକାଶକ:
**ଶୁଭସ୍ମିତା ପ୍ରକାଶନ**
**କଟକ-୪**

ପ୍ରଥମ ସଂସ୍କରଣ-୨୦୦୩

ମୁଦ୍ରଣ:
**ପ୍ରିଣ୍ଟୋପ୍ରିଣ୍ଟ୍**
**କଟକ-୮**

ଅକ୍ଷର ସଜ୍ଜା:
**ପ୍ରିଣ୍ଟୋପ୍ରିଣ୍ଟ୍**
**କଟକ-୮**

**ମୂଲ୍ୟ: ଟ ୧୨.୦୦**

# ସୂଚୀ

| ବିଷୟ | ପୃଷ୍ଠା |
| --- | --- |

# କଇଁଚ ତା'ର ଖୋଳ ପାଇଲା କିପରି ?

ଭଗବାନ ତାଙ୍କ ବାହାଘର ଭୋଜିକୁ ଜଗତର ସମସ୍ତ ଜୀବଜନ୍ତୁଙ୍କୁ ନିମନ୍ତ୍ରଣ କରିଥିଲେ । କଇଁଚ କିନ୍ତୁ ସେହି ଭୋଜିରେ ଯୋଗ ଦେଲା ନାହିଁ ।

କଇଁଚ କାହିଁକି ଆସିଲା ନାହିଁ ?

ଭଗବାନ ତା'ର କାରଣ କିଛି ଜାଣିପାରିଲେ ନାହିଁ ।

ତା ପରଦିନ ଭଗବାନ ନିଜେ କଇଁଚକୁ ଭେଟି ପଚାରିଲେ ଯେ ସେ କାହିଁକି ବାହାଘର ଭୋଜିରେ ଯୋଗ ଦେଲା ନାହିଁ ?

ଅଳସୁଆ କଇଁଚ କହିଲା "ନିଜ ଘର ପରି ସେଠାରେ କିଛି ଉପଯୁକ୍ତ ବ୍ୟବସ୍ଥା ନଥିଲା ।"

ଏହା ଶୁଣି କଇଁଚର ଅଳସୁଆ ପଣ ପାଇଁ ଭଗବାନ ଖୁବ୍ ରାଗିଗଲେ ଏବଂ ତା'ର ଘରଟି ତା ଉପରେ ସବୁ ଦିନ ପାଇଁ ଲଦି ହୋଇ ରହୁ ବୋଲି ଅଭିଶାପ ଦେଲେ । ତେଣୁ କଇଁଚ ତା'ର ଘରକୁ ତା'ର ଖୋଳ ଭାବେ ପାଇଥିଲା ।





# ମନୁଷ୍ୟ ଘର କରିବା ଶିଖିଲା କିପରି ?

ହଜାର ହଜାର ବର୍ଷତଳେ ଯେତେବେଳେ ପୃଥିବୀରେ ମନୁଷ୍ୟ ସୃଷ୍ଟି ହେଲେ ସେତେବେଳେ ଲୋକମାନେ ଏହି ନୂତନ ଯୁଗ ପରି ଘରଦ୍ୱାର କରି ରହିବା ଜାଣିନଥିଲେ । ଗଛମୂଳ, ଗଛ ତଳେ ଏବଂ ଗୁମ୍ଫାମାନଙ୍କରେ ରହୁଥିଲେ । ସବୁଆଡ଼େ ବଣ ଜଙ୍ଗଲ ପୂରିରହିଥିଲା । ଚାଷ ଜମି ନଥିଲା କି ବନ୍ଧୁବାନ୍ଧବ ଏହିପରି କିଛି ନଥିଲେ । ସବୁ ଆଡ଼େ ବଣ ଜଙ୍ଗଲ ପୂରି ରହିଥିବାରୁ ହିଂସ୍ର ଜନ୍ତୁ, ବାଘ, ସିଂହ, ଭାଲୁ ଇତ୍ୟାଦି ବନ୍ୟ ଜନ୍ତୁଙ୍କର ଶିକାର ହୋଇ ଯାଉଥିଲେ ।



ଏହିପରି କେତେ ବର୍ଷ ଗଲାପରେ ଦେଖିଲେ ପକ୍ଷୀମାନେ କାଠି କୁଟା ଆଣି ଗଛ ଡାଳମାନଙ୍କରେ ବସା ବାନ୍ଧି ରହୁଛନ୍ତି, କେତେକ ଗଛ କୋରଡ଼ରେ ରହୁଛନ୍ତି, ପିମ୍ପୁଡ଼ି, ମୂଷା, ଉଇ ଓ ସରୀସୃପମାନେ ମାଟି ତଳେ ଗାତ କରି ରହୁଛନ୍ତି । ଏଣୁ ଏମାନେ କ'ଣ କଲେ ନା ଗଛ ଡାଳମାନଙ୍କରେ ମଞ୍ଚା ବାନ୍ଧି ବା ଭାଡ଼ି ତିଆରି କରି ରହିଲେ । ଏହାଦ୍ୱାରା ହିଂସ୍ର ଜନ୍ତୁଙ୍କ ଦାଉରୁ ତ ରକ୍ଷା ପାଇଲେ ମାତ୍ର ବର୍ଷା, ଥଣ୍ଡା, କାକର ଇତ୍ୟାଦିରୁ ରକ୍ଷା ପାଇ ପାରିଲେ ନାହିଁ । ଦିନେ ଦେଖିଲେ ବାଇଚଢ଼େଇମାନେ ତାଳ, ନଡ଼ିଆ, ଖଜୁରୀ ଇତ୍ୟାଦି ଗଛ ମାନଙ୍କରେ ବସା ବୁଣି ସେହି ଭିତରେ ରହୁଛନ୍ତି । ବର୍ଷା, ଥଣ୍ଡା, କାକରର ଭୟ ନଥାଏ । ଏହା ମନୁଷ୍ୟ ଦେଖି ଭାବିଲା ସେ ମଧ୍ୟ ଘର ତିଆରି କରିବ । ଏଣୁ ଗଛରୁ ଡାଳ ଆଣି, ଡାକୁ ପୋତି ତା ଉପରେ ବିଭିନ୍ନ ପ୍ରକାର ଡାଳ ପତର ଘୋଡ଼ାଇ ଦେଲେ ଯେପରି ବର୍ଷା ପାଣି ତା ଭିତରକୁ ନ ଯିବ ଏବଂ ଗୋଟିଏ ଦୁଆର ରଖିଲେ ଭିତରକୁ ଯିବା

ଆସିବା ପାଇଁ । ରାତିରେ ଦୁଆରଟିକୁ ଡାଳ ପତର ଦେଇ ବନ୍ଦ କରିଦେଉଥିଲେ । ହିଂସ୍ରଜନ୍ତୁଙ୍କଠାରୁ ରକ୍ଷା ପାଇବା ପାଇଁ କେତେକ ଲୋକ ମିଶି ଏକାଠି ଦଳ ବାନ୍ଧି ଘର କଲେ । ଆସ୍ତେ ଆସ୍ତେ ବିଭିନ୍ନ ଉପାୟ ଚିନ୍ତା କରି ଘରକୁ ଉଁଚା କଲେ



ଘରଭିତରେ ବାହାର ପାଣି ନ ପଶିବା ପାଇଁ । ବାଉଁଶରେ ଚାଞ୍ଚ, ତାଟି, ତଲେଇ ଇତ୍ୟାଦି ବୁଣି ସୁନ୍ଦର ସୁନ୍ଦର ଘର କଲେ । ତା'ପରେ ମାଟିରେ କାନ୍ଥ କରି, କାନ୍ଥ ଉପରେ ବିଭିନ୍ନ ପ୍ରକାରର କାଠ ଲଦି ତାଉପରେ ଲମ୍ବା ଲମ୍ବା ଘାସ, ସବାଇଘାସ ଇତ୍ୟାଦିରେ ଘର ଛପର କଲେ । ଏଥିରେ ନିଆଁର ଭୟ ରହିଲା । ଏଣୁ ମାଟି କାନ୍ଥ ଉପରେ କାଠ, ବାଉଁଶ ଦେଇ ସେଥିରେ ମାଟି ଲେସି ଦେଲେ, ତାଉପରେ ଯାଇ ଘର ଛପର କଲେ । ଏଥିରେ ମଧ୍ୟ ଛାତ ପୋଡ଼ି ଯାଉଥାଏ । ମାଟିରେ କାନ୍ଥ କରିବା ହେତୁ କେତେ ଦିନ ପରେ ବର୍ଷା ପାଣିରେ କାନ୍ଥ ଭାଙ୍ଗି ପଡୁଥାଏ । ସେମାନେ ଥରେ ଦେଖିଲେ ଯେ ପୋଡ଼ିଯାଇଥିବା କାନ୍ଥ ବର୍ଷା ପାଣିରେ ଧୋଇ ହେଉ ନାହିଁ କିନ୍ତୁ ନ ପୋଡ଼ିଥିବା କାନ୍ଥ ବର୍ଷାରେ ଧୋଇ ହୋଇଯାଉଛି । ଏଣୁ ମାଟିରେ ଇଟା ତିଆରି କରି ତାକୁ ପୋଡ଼ି ସେଥିରେ କାନ୍ଥ ତିଆରି କଲେ । କାଠ କାଟି କବାଟ, ଝରକା ଇତ୍ୟାଦି ତିଆରି କଲେ । ତା ପରେ ଚୂନର ଆବିଷ୍କାର



କଲେ । ସେହି ଚୂନ ଓ ବାଲିରେ ମସଲା କରି କାନ୍ଥ ତିଆରି କଲେ । ଚୁନକୁ ଖୁବ୍ ଟାଣ କରିବାକୁ ସେଥିରେ ଗୁଡ଼, ଗଛର ଅଠା ଇତ୍ୟାଦି ମିଶାଇଲେ । ଏହି ମିଶ୍ରିତ ଚୁନକୁ ମାଟିରେ ତିଆରି ଇଟାରେ ବୋଳି କାନ୍ଥ ତିଆରି କଲେ ଏବଂ ସେଥିରେ ନଡ଼ାରେ ଛପର କରି ରହିଲେ । କିନ୍ତୁ ଜୋର ପବନ ହେଲେ ନଡ଼ା ଛପର ଉଡ଼ିଯାଇ ବର୍ଷା ପାଣି ଗଳିଲା । ଏହା ପରେ ମଣିଷ ସିମେଣ୍ଟ ତିଆରି କରି ଶିଖିଲା । ତାପରେ କଡ଼ିବର୍ଗା ଛାତ, ଟିଣ ଛାତ, ଆଜବେଷ୍ଟସ ସିମେଣ୍ଟ ଚଦର ଛାତ ଏବଂ ବର୍ତ୍ତମାନର ଲୁହାଛଡ଼, ସିମେଣ୍ଟ, ବାଲି, ଚିପସ୍ ମିଶାଇ କଂକ୍ରିଟ୍ ଛାତ ତିଆରି କଲେ । ଘରକୁ ସୁନ୍ଦର କରିବା ପାଇଁ ବିଭିନ୍ନ ପ୍ରକାର ରଙ୍ଗ ଦେଲେ । ଚଟାଣକୁ ସିମେଣ୍ଟ, ମୋଜାଇକ ଇତ୍ୟାଦିରେ ତିଆରି କଲେ । ଏହିପରି ଘର ତିଆରି କରି ଆରାମରେ ରହିଲେ ।



# ମନୁଷ୍ୟ ରାନ୍ଧି ଖାଇବା ଶିଖିଲା କିପରି ?

ପୃଥିବୀରେ ମନୁଷ୍ୟ ସୃଷ୍ଟି ହେବା ବେଳେ ଚାରିଆଡ଼େ ଘଞ୍ଚ ଜଙ୍ଗଲ ଥିଲା । ମନୁଷ୍ୟ ସେହି ଜଙ୍ଗଲରୁ ଫଳ ମୂଳ ଖାଏ । ବାଘ, ସିଂହ ଯେପରି ବିଭିନ୍ନ ଜୀବଜନ୍ତୁ ମାରି ତା'ର କଞ୍ଚା ମାଂସ ଓ ରକ୍ତ ପିଅନ୍ତି ସେହିଭଳି ମନୁଷ୍ୟ, ମଧ୍ୟ ବିଭିନ୍ନ ଜନ୍ତୁ ମାରି ତା'ର ରକ୍ତ ପିଏ ଓ କଞ୍ଚା ମାଂସ ମଧ୍ୟ ଖାଏ ।



ଦିନେ ମନୁଷ୍ୟ ଶିକାର କରିବାକୁ ଘୂରିବୁଲୁଥିଲା । ଏହି ସମୟରେ ଜଙ୍ଗଲରେ ନିଆଁ ଲାଗିଗଲା । ସେହି ନିଆଁ ଭିତରେ ଗୋଟିଏ ହରିଣ ପୋଡ଼ିହୋଇ ଯାଉଥିବାର ଦେଖିଲା । ମନୁଷ୍ୟକୁ ତ ଭାରି ଭୋକ ହେଉଥିଲା ନିଆଁ ଲିଭିଲା ପରେ ସେ ସେହି ପୋଡ଼ି ହୋଇଯାଇଥିବା ହରିଣଟିର ମାଂସ କାଟି ଖାଇଲା । କଞ୍ଚା ମାଂସ ଅପେକ୍ଷା ଏହି ମାଂସଟି ତାକୁ ଭାରି ଭଲ ଲାଗିଲା । ପାଖରେ ଥିବା ଅନ୍ୟ ମଣିଷମାନଙ୍କୁ ମଧ୍ୟ ସେହି ମାଂସ ଖାଇବାକୁ ଦେଲା । ସେମାନେ ମଧ୍ୟ ଭାରି ବଢ଼ିଆ ଲାଗୁଛି ବୋଲି କହିଲେ । ତାପରେ କଞ୍ଚା ଫଳ ମୂଳକୁ ମଧ୍ୟ ପୋଡ଼ି ଖାଇଲା । ତାହା ମଧ୍ୟ ଭଲ ସୁଆଦ ଲାଗିଲା । ମଣିଷ ସେହିଦିନଠାରୁ କଞ୍ଚା ଖାଦ୍ୟ ବଦଳରେ ପୋଡ଼ା ଖାଦ୍ୟ ଖାଇବାକୁ ଲାଗିଲେ ଏହା ପରେ ମଣିଷ ସିଝାଇ ଖାଇବା ଶିଖିଲା ଏବଂ ବହୁ ବର୍ଷ ପରେ ତେଲ ମସଲାର ବ୍ୟବହାର ଜାଣିଲାପରେ ଭଲଭାବେ ତେଲ ମସଲା ଦେଇ ରାନ୍ଧି ଖାଇଲା ।

# ମନୁଷ୍ୟ ନିଆଁକୁ ସାଇତି ରଖିଲା କିପରି ?

ପୃଥିବୀ ସୃଷ୍ଟି ହେଲା ପରେ ପୃଥିବୀପୃଷ୍ଠରେ ଜୀବଜନ୍ତୁ, ବୃକ୍ଷଲତା, ମନୁଷ୍ୟ ଇତ୍ୟାଦିଙ୍କର ଶୃଷ୍ଟି ହୋଇଛି । କାଳକ୍ରମେ ଜଙ୍ଗଲରେ ନିଆଁ ଲାଗି ସେଥିରେ ପୋଡ଼ି ହୋଇଥିବା ପଶୁମାନଙ୍କୁ ମନୁଷ୍ୟମାନେ ଖାଇଲେ ଏବଂ ତାର ସ୍ୱାଦ ଅନୁଭବ କଲେ । ଏହି ପୋଡ଼ା ଜିନିଷ ଖାଇବାପରେ ସେମାନେ ନିଆଁର ଆବଶ୍ୟକତା ସମ୍ପର୍କରେ ଜାଣିପାରିଲେ । ମାତ୍ର ନିଆଁକୁ କିପରି ସବୁଦିନ ପାଇଁ ରଖିପାରିବେ ଜାଣି ନଥିଲା । ପ୍ରଥମେ ପ୍ରଥମେ ଜଙ୍ଗଲରେ ନିଆଁ ଲାଗିଲେ ସେଥିରୁ ନିଆଁ ଖୁଣ୍ଟା ଆଣି ତା'ଉପରେ ଶୁଖିଲା କାଠ, ପତର ପକାଇ ନିଆଁକୁ ସବୁ ବେଳେ ଜାଳି ରଖିବାକୁ ଚେଷ୍ଟା କଲେ । ମାତ୍ର ବର୍ଷା ଦିନ ହେଲେ ବର୍ଷା ଯୋଗୁଁ ତାହା ଲିଭିଯାଉଥାଏ । କୁଡ଼ିଆ ଘର ପୋଡ଼ିଯିବା ଡରରେ ଘର ଭିତରେ ନିଆଁକୁ ଜାଳି ରଖୁନଥିଲେ । ଏଣୁ ଭାରି ଅସୁବିଧା ହେଉଥାଏ ।



ଦିନେ ଖରାବେଳେ ଗୋଟିଏ ବାଉଁଶ ବୁଦା ମୁଳେ ବସିଥିଲେ । ପବନରେ ବାଉଁଶ ବାଉଁଶ ଘସି ହୋଇ ହଠାତ୍ ନିଆଁ ଲାଗିଯିବାର ଦେଖାଗଲା । ଏଣୁ ସେମାନେ ଜାଣିପାରିଲେ ଯେ ଦୁଇଟି ଶୁଖିଲା ବାଉଁଶ ବହୁତ ସମୟ ଘସି ହେବା ପରେ ସେଥିରୁ ନିଆଁ ବାହାରୁଛି । ଏହିପରି କେତେ ବର୍ଷ ସେମାନେ ନିଆଁ ବାହାର କରିଚାଲିଲେ । ମାତ୍ର ଏହା ବହୁତ କଷ୍ଟ ଓ ସମୟସାପେକ୍ଷ ହେଲା । ଏଣୁ ଅନ୍ୟ

ଉପାୟ ଖୋଜିଲେ । ଖରା ଦିନ ହୋଇଥାଏ, ପାହାଡ଼ରୁ କୌଣସି କାରଣବଂସତଃ ଗୋଟିଏ ପଥର ଗଡ଼ି ଗଡ଼ି ଆସିଲା । ପଥର ଗଡ଼ି ଆସିବା ବେଳେ ଅନ୍ୟ ପଥର ସହ ଆଘାତ ପାଇ ସେଥିରୁ ଚିକ୍ ଚିକ୍ ହୋଇ ନିଆଁ ବାହାରୁ ଥିବାର ସେମାନେ ଦେଖିଲେ ଏବଂ ସେହି ନିଆଁ ଶୁଖିଲା ପତରମାନଙ୍କରେ ଲାଗି ପତରଗୁଡ଼ିକ ପୋଡ଼ି ଆସ୍ତେ ବଣ ମଧ୍ୟ ପୋଡ଼ିଯାଉଥିବାର ସେମାନେଦେଖିଲେ । ଏଥିରୁ ସେମାନେ ଜାଣିପାରିଲେ ଯେ ବାଉଁଶ ଘସି ନିଆଁ ବାହାର କରିବା ଅପେକ୍ଷା ଦୁଇଟି ପଥରକୁ ଯୋରରେ ବାଡ଼ାଇଲେ ସେଥିରୁ ଶୀଘ୍ର ନିଆଁ ବାହାରୁଛି । ଏଣୁ ସେହି ଦିନଠାରୁ ପଥରକୁ ପଥର ଘସି ନିଆଁ ବାହାରକରୁଥିଲେ । ତାପରେ କିଛି ବର୍ଷ ପରେ ସେମାନେ ଦେଖିଲେ ପାହାଡ଼ରୁ ଏକ ଭିନ୍ନ ପଥର (ଝକମକି ପଥର) ଗଡ଼ି ଆସି ତଳେ ପଡ଼ିଛି । ସେମାନେ ସେହି ପଥର ପରସ୍ପର ଘସିଲେ । ସେମାନେ ଦେଖିଲେ ସାଧାରଣ ପଥର ଘସିବା ଅପେକ୍ଷା ଏହି ପଥର ଘସିଲେ ଅତି ସହଜରେ ନିଆଁ ବାହାରିପାରୁଛି । ତେଣୁ ସେମାନେ ସାଧାରଣ ପଥର ଅପେକ୍ଷା ଝକମକି ପଥର ବ୍ୟବହାର କଲେ ।

ତା'ର ବହୁତ ବର୍ଷ ପରେ ବାରୁଦର ଆବିଷ୍କାର ହେଲା ଏହି ବୈଜ୍ଞାନିକ ଯୁଗରେ ସେହି ବାରୁଦରୁ ଦିଆସିଲିର ଉଦ୍‌ଭାବନ ହେଲା । ସେହି ଦିଆସିଲି କାଠିକୁ ଦିଆସିଲି ଖୋଳରେ ରଖି ସୁରକ୍ଷିତ ରହି ଯେତେବେଳେ ଦରକାର ତାହାର ବ୍ୟବହାର କରିପାରିଲେ ।



# ମନୁଷ୍ୟ ସଞ୍ଚୟ କରି ରଖିବା ଶିଖିଲା କିପରି ?

ଭଗବାନଙ୍କ ଏହି ବିଚିତ୍ର ଲୀଳା ପୃଥିବୀରେ ମନୁଷ୍ୟର ସୃଷ୍ଟି ଆଗରୁ ତା'ର ଖାଇବା ପିଇବାର ବ୍ୟବସ୍ଥା ଭଗବାନ କରିସାରିଥିଲେ । ସେତେବେଳେ ଚାରି ଆଡ଼େ ଘଞ୍ଚ ଜଙ୍ଗଲ ଭରିରହିଥିଲା । ଜୀବଜନ୍ତୁମାନେ ଯାହାସବୁ ଖାଉଥିଲେ, ମନୁଷ୍ୟ ତାହା ଦେଖି ସେସବୁ ଖାଇଲା । ପରେ ପରେ ଯାହା ତାକୁ ରୁଚିକର ହେଲା ସେସବୁକୁ ଖାଇଲା । ନିଆଁର ବ୍ୟବହାର ଜାଣିଲାପରେ ରାନ୍ଧିକରି ଖାଇଲା । ହିଂସ୍ର ଜନ୍ତୁଙ୍କ ଦାଉରୁ ଓ ଥଣ୍ଡା କାକର, ବର୍ଷା ଇତ୍ୟାଦିରୁ ରକ୍ଷା ପାଇବା ପାଇଁ ଘର ତିଆରି କଲା । ମାତ୍ର ପ୍ରତ୍ୟେକ ଦିନ କ'ଣ ଜଙ୍ଗଲରୁ ଯାହା ମିଳୁଥିଲା ଖୋଜି ଆଣି ଖାଉଥିଲା । ଖାଦ୍ୟ ପାଇଁ ସବୁଦିନ ଜଙ୍ଗଲକୁ ଯିବାକୁ ପଡୁଥିଲା । ଯେଉଁଦିନ ଯାଇପାରୁନଥିଲା ସେହିଦିନ ଭୋକ ଉପବାସରେ ରହୁଥିଲା । ଦିନେ ଦିନେ ମଧ୍ୟ ଯେତିକି ଖାଦ୍ୟ ଦରକାର ସେତିକି ଖାଦ୍ୟ ମଧ୍ୟ ସଂଗ୍ରହ କରି ପାରୁନଥିଲା ଏହି ପରି ଭାରି ହଇରାଣ ହେଉଥିଲା ।



ଦିନେ ଖାଦ୍ୟ ପାଇଁ ବୁଲୁ ବୁଲୁ ଦେଖିଲା କେତେଗୁଡ଼ିଏ ପିମ୍ପୁଡ଼ି ଧାଡ଼ିବାନ୍ଧି ଚାଲିଛନ୍ତି ଏବଂ କିଛି କିଛି ଖାଦ୍ୟ ପାଟିରେ ଧରିଛନ୍ତି । ମନୁଷ୍ୟ ଭାବିଲା ଏହା ସେମାନେ କୁଆଡ଼େ ନେଉଛନ୍ତି । ସେମାନଙ୍କ ଧାଡ଼ି ଦେଖି ଦେଖି ଚାଲିଲା । କିଛି ଦୂର ଗଲା ପରେ ଦେଖିଲା ଯେ ପିମ୍ପୁଡ଼ିମାନେ ଗୋଟିଏ ଗାତ ଭିତରେ ପଶୁଛନ୍ତି । ସେହି ଗାତକୁ ଖୋଳିଲା । କିଛି ଗହିରା ଖୋଳିଲା ପରେ ଦେଖିଲା ଯେ ବହୁତ ଖାଦ୍ୟ ପଦାର୍ଥ ଗଦା ହୋଇଛି । ତା ପରଦିନ ଭାରି ବର୍ଷା ହେଲା । ପିମ୍ପୁଡ଼ି ଧାଡ଼ି ଆଉ ନାହିଁ । ସେହି ଗାତ ପାଖକୁ ଯାଇ ଦେଖିଲା, ପିମ୍ପୁଡ଼ିମାନେ ସେହି ଗାତ

ଭିତରେ ରହି ରଖିଥିବା ଖାଦ୍ୟକୁ ଖାଉଛନ୍ତି । ସେହିପରି ଆଉଦିନେ ଦେଖିଲା ମହୁମାଛି ଦଳେ ଆସି ଫୁଲମାନଙ୍କରେ ବସୁଛନ୍ତି ଓ ପୁଣି ଉଡ଼ିଯାଉଛନ୍ତି । କିଛି ସମୟ ପରେ ଆଉଥରେ ଆସି ଅନ୍ୟ ଫୁଲମାନଙ୍କରେ ବସୁଛନ୍ତି ଏବଂ କିଛି ସମୟ ପରେ ଉଡ଼ିଯାଉଛନ୍ତି ।



ମନୁଷ୍ୟ ସେହି ମହୁମାଛି କେଉଁଠୁ ଆସୁଛି ଓ କେଉଁଆଡ଼େ ଯାଉଛି ତାକୁ ଲକ୍ଷ୍ୟ କଲା । ତାପଛେ ପଛେ ଦଉଡ଼ିଗଲା । କିଛି ଦୂରରେ ସେମାନେ ଗୋଟିଏ ଥଳି ପରି (ମହୁଫେଣା) ଗୋଟାଏ ଯାଗାରେ ପଶୁଛନ୍ତି ପୁଣି କିଛି ସମୟ ପରେ ବାହାରିଆସୁଛନ୍ତି । ମହୁମାଛିମାନେ ବାହାରି ଯିବା ପରେ ଲୋକଟି ସେହି ଥଳିଟିକୁ ଆଣି ଦେଖିଲା ସେଥିରେ ମିଠା ମିଠା କେତେ ରସ ଅଛି । ପୁଣି କିଛି ଦିନ ପରେ ଯାଇ ଦେଖିଲା ସେହି ଥଳି ଭିତରେ ଆଉ କିଛି ନାହିଁ ।



ଆଗରୁ ମଧ୍ୟ ଦେଖିଲା ଯେ, ବାଘ ସିଂହମାନେ ମଧ୍ୟ ଯାହା ଶିକାର କରୁଛନ୍ତି ତାକୁ ଖାଉଛନ୍ତି ବାକି ଯେତିକି ନ ଖାଇ ପାରିଲେ ସେତକ ଗୋଟିଏ

ବୁଦା ଭିତରେ ଲୁଚାଇ ରଖୁଛନ୍ତି । ପୁଣି ଯେତେବେଳେ ଭୋକ ହେଉଛି ଆସି ଖାଉଛନ୍ତି । ଏ ସବୁ ଦେଖି ମନୁଷ୍ୟ ଭାବିଲା ସେ ମଧ ପ୍ରତିଦିନ ଯାହା ଖାଇବା ପଦାର୍ଥ ଆଣିବ ତାକୁ ଖାଇବ ବାକି ଯାହା ନ ଖାଇ ପାରିବ ତାକୁ ସାଇତି ରଖିବ । ଯେଉଁ ଦିନ କିଛି ନ ଆଣି ପାରୁଥିବ ବା ବର୍ଷା ଦିନେ ପଦାକୁଯାଇପାରୁ ନଥିବ ସେତେବେଳେ ତାକୁ ଖାଇବ । ହେଲେ ସବୁ କଞ୍ଚା ବା ପାଚିଲା ଖାଦ୍ୟ ବେଶି ଦିନ ରହିଲା ନାହିଁ । କିଛି ଦିନ ପରେ ତାହା ପଚି ଗନ୍ଧ କଲା । ଏଣୁ ବଳକା ଖାଦ୍ୟକୁ ଶୁଖାଇ ରଖିଲା । ଏହିପରି ଖାଦ୍ୟ ସଞ୍ଚୟ କରିବା ଶିଖିଲା ।

ଖାଦ୍ୟ ପରି ଅର୍ଥ ମଧ ସଞ୍ଚୟ କରିବା ନିହାତି ଜରୁରି । ଆଜିକାଲି ଅର୍ଥ ହିଁ ସବୁ କିଛି । ସାଙ୍ଗ ସାଥି, ବନ୍ଧୁ ବାନ୍ଧବ ଦରକାର ବେଳେ ତୁମର କାମରେ ଆସିବେ ନାହିଁ କିନ୍ତୁ ସଞ୍ଚୟ କରିଥିବା ଅର୍ଥ ତୁମର ଦରକାର ବେଳେ ବହୁତ କାମରେ ଆସେ ।

ଏଣୁ ସମସ୍ତେ ମନେ ରଖିବା କଥା ଯେ ପ୍ରତିଦିନ କିଛି ନା କିଛି ପଇସା ସାଇତି ରଖିବା ଉଚିତ । ଦିନେ ନା ଦିନେ ତାହା ବହୁତ ଦରକାରରେ ଲାଗି ପାରିବ ।



# ମନୁଷ୍ୟ ଲୁଗାର ବ୍ୟବହାର ଶିଖିଲା କିପରି ?

ଭଗବାନ ସୃଷ୍ଟି ରଚନା କଲା ପରେ ପୃଥିବୀରେ ପ୍ରଥମେ ପୋକ ଯୋକ, ତା ପରେ ସରୀସୃପ, ତା ପରେ ଜୀବଜନ୍ତୁ ଶେଷରେ ମନୁଷ୍ୟକୁ ଜନ୍ମ ଦେଲେ । ହେଲେ ସେତେବେଳେ ମନୁଷ୍ୟମାନେ ଏହି ବୈଜ୍ଞାନିକ ଯୁଗରେ ଚଳିଲା ପରି ଚଳ ପ୍ରଚଳ ହେଉନଥିଲେ । ପ୍ରଥମେ ସ୍ତ୍ରୀ ପୁରୁଷ ଉଲଗ୍ନ ରହୁଥିଲେ । ତା'ର କେତେ କାଳ ପରେ ଗଛର ବକଳ ପିନ୍ଧି ଲଜ୍ଜା ନିବାରଣ କଲେ । ଲୁଗାପଟାର ବ୍ୟବହାର ମୋଟେ ଜାଣି ନଥିଲେ ।

ଦିନେ ଜଙ୍ଗଲରେ ବୁଲୁ ବୁଲୁ ହଠାତ ତାଙ୍କ ଦେହରେ ଜାଲ ପରି କ'ଣ ଗୁଡ଼ାଏ ଲାଗିଲା । ହାତ ମାରି ଦେଖିଲେ ଅତି ସରୁ ସରୁ ସୁତା ପରି କ'ଣ ଗୁଡ଼ାଏ ଛନ୍ଦି ହୋଇ ତାଙ୍କ ଦେହରେ ଲାଗୁଛି । କିଛି ଦୂରକୁ ଯାଇ ଦେଖିଲେ ଗୋଟିଏ ବୁଢ଼ିଆଣୀ ଗଛର ଏଡାଳରୁ ସେ ଡାଳକୁ ଯାଉଛି ପୁଣି କିଛି ସମୟ ଶୂନ୍ୟରେ ଝୁଲି ଯାଉଛି । ପୁଣି ଏପଟରୁ ସେପଟ ତଳ ଉପର ହୋଇଯାଉଛି । ତା ସହିତ ଗୋଟିଏ ଜାଲ ପରି ଜିନିଷଟିଏ ବୁଣି ହୋଇଯାଉଛି । ସେଠୁ ସେ ଭାବିଲା ଏହିପରି ସୁତା କାଟି ବୁଣିଲେ ଲୁଗା ହୋଇପାରିବ । ହେଲେ ସୁତା କରିବ କିପରି ?

ଏହିପରି ଚିନ୍ତା କରୁ କରୁ ଦିନେ ଦେଖିଲା ଗୋଟିଏ ଗଛର ପତର ପାଣିରେ ସଢ଼ି ସେଥିରୁ ସୁତା ପରି ଜିନିଷଗୁଡ଼ାଏ ରହିଛି । ସେହି ପତରକୁ ପାଣିରେ ପଚାଇ ସେଥିରୁ ସୁତା ବାହାର କରି ଲୁଗା ବୁଣିବାକୁ ଶିଖିଲା । ମାତ୍ର ତାହା ପିନ୍ଧିବାକୁ ଭଲ ଲାଗିଲା ନାହିଁ । ତାପରେ ବିଭିନ୍ନ ପ୍ରକାର ଚେଷ୍ଟା କରୁ କରୁ କପାରୁ ସୁତା ଭଲ ବାହାରିବାର ଜାଣିପାରିଲା ଏବଂ ସେଥିରୁ ସୁତା ତିଆରି କରି ଲୁଗା ବୁଣି ପିନ୍ଧିବାକୁ ଶିଖିଲା ।

# କଦଳୀ ପାଚେ କିପରି ?

କଦଳୀ ଏପରି ଏକ ଫଳ ତାହା ସବୁ ଯାଗାରେ ହୁଏ ନାହିଁ । କଦଳୀ ଚାଷ କେତେକ ନିର୍ଦ୍ଦିଷ୍ଟ ତାପମାତ୍ରା ଅଞ୍ଚଳରେ କରାଯାଏ । କଦଳୀ ପାଚିବା ପାଇଁ ନିର୍ଦ୍ଦିଷ୍ଟ ପରିପକ୍ୱ ଅବସ୍ଥା, ନିର୍ଦ୍ଦିଷ୍ଟ ତାପମାତ୍ରା ଏବଂ ଆର୍ଦ୍ରତାରେ ଏହା ସୁବିଧାରେ ପାଚିଥାଏ ।

କଦଳୀ ନିଜେ ପାଚିବା ପାଇଁ ପ୍ରଚୁର ପରିମାଣର ଇଥିଲିନ୍ ବାଷ୍ପ ନିର୍ଗତ କରେ । ବାୟୁ ଚଳାଚଳ ସ୍ଥାନରେ କଦଳୀକୁ ରଖିଲେ ଏହି ଇଥିଲିନ୍ ବାଷ୍ପ ବାୟୁରେ ମିଶିଯାଏ । କଦଳୀକୁ ଅଖା ପ୍ରଭୃତିରେ ଘୋଡ଼ାଇ ରଖିଲେ ଇଥିଲିନ୍ ବାଷ୍ପ ନଷ୍ଟ ହୁଏ ନାହିଁ । ଇଥିଲିନ୍ ବାଷ୍ପ ନଷ୍ଟ ନହେବା ଦ୍ୱାରା କଦଳୀ ଶୀଘ୍ର ପାଚିଯାଏ । କଦଳୀ ପାଚିବା ପାଇଁ ଯେଉଁ କ୍ୟାଲ୍‌ସିୟମ୍ କାର୍ବାଇଡ୍ ଦିଆଯାଏ ତାହା ଦ୍ୱାରା ଇଥିଲିନ୍ ନିର୍ଗତ ହୋଇ କଦଳୀକୁ ପଚାଇଥାଏ ।

୨୦ ସେଣ୍ଟିଗ୍ରେଡ୍ ତାପମାତ୍ରା ଏବଂ ୯୦-୯୫ ପ୍ରତିଶତ ଆପ୍‌ଲିକ୍ ଆର୍ଦ୍ରତା କଦଳୀ ପାଚିବା ପାଇଁ ଉପଯୁକ୍ତ । ଏହାଠାରୁ ଅଧିକ ବା କମ୍ ତାପମାତ୍ରାରେ କଦଳୀ ଠିକ୍‌ଭାବେ ନ ପାଚି ନଷ୍ଟ ହୋଇଯାଇଥାଏ ।



# ପିମ୍ପୁଡ଼ି ଖାଦ୍ୟ ସଂଗ୍ରହରେ ବାହାରିବାବେଳେ ଧାଡ଼ିବାନ୍ଧି ଚାଲନ୍ତି କାହିଁକି ?

ଜଣାଯାଇଛି ପିମ୍ପୁଡ଼ି ପରି ଅନେକ କ୍ଷୁଦ୍ର କୀଟ ବାଟରେ ଚାଲିଗଲାବେଳେ ସେମାନଙ୍କ ଶରୀରରୁ ଏକ ନିଜସ୍ୱ ରାସାୟନିକ ଗନ୍ଧ ଛାଡ଼ିଦେଇଯାଆନ୍ତି । ଗୋଟିଏ ମହୁମାଛି ଦଳର ସମସ୍ତ ମହୁମାଛି କେବଳ ଗୋଟିଏ ପ୍ରକାର ଗନ୍ଧ ଛାଡ଼ନ୍ତି । ତେଣୁ ମହୁମାଛିମାନେ ନିଜ ନିଜ ଦଳର ଗନ୍ଧବାରି ନିଜ ଦଳକୁ ଫେରି ଆସନ୍ତି ଏବଂ ଅନ୍ୟଦଳକୁ ଯାଇ ପାରନ୍ତି ନାହିଁ । ଏହି ଗନ୍ଧର ନାମ ଫେରୋମୋନସ୍ ।

ଠିକ୍ ସେମିତି ପିମ୍ପୁଡ଼ି ଖାଦ୍ୟ ସଂଗ୍ରହ କରି ଯିବା ବାଟରେ ବାଟସାରା ତା'ର ଗନ୍ଧ ଛାଡ଼ିଯାଏ । ତେଣୁ ପରବର୍ତ୍ତୀ ପିମ୍ପୁଡ଼ିସବୁ ଗନ୍ଧ ବାରି ସେହି ପଥ ଅନୁସରଣ କରିଥାନ୍ତି । ପିମ୍ପୁଡ଼ି ତା'ର ଗୋଡ଼ର ପଞ୍ଝା ଦେଇ ଏହି ଗନ୍ଧ ଛାଡ଼ିଥାଏ । ପଛକୁ ପଛ ଆସୁଥିବା ପିମ୍ପୁଡ଼ିମାନେ ମଧ୍ୟ ଏପରି ଗନ୍ଧ ଛାଡ଼ିଥାନ୍ତି । ଏହି ଗନ୍ଧ କ୍ରମଶଃ ତୀବ୍ର ହୁଏ । ପିମ୍ପୁଡ଼ିର ଘ୍ରାଣଶକ୍ତି ମଧ୍ୟ ପ୍ରଖର । ତେଣୁ ଗୋଟାକ ପରେ ଗୋଟିଏ ପିମ୍ପୁଡ଼ି ସେହି ଗନ୍ଧ ବାରି ଆଗକୁ ଆଗକୁ ଧାଡ଼ି ବାନ୍ଧି ଚାଲନ୍ତି । ବେଳେ ବେଳେ ନିଜେ ଦେଖିଲେ ଜାଣି ପାରିବେ ପିମ୍ପୁଡ଼ିମାନେ ଚାଲିଥିବା ରାସ୍ତାରେ ଏକ ଦାଗ ପଡ଼ି ଯାଇଥାଏ । ସେମାନେ ଚାଲିଯାଉଥିବା ବାଟରେ ଏକ ସରୁ କାଠିରେ ବା ନଖରେ ସରୁ ଗାରଟିଏ ପକାଇଦେଲେ ସେମାନେ ଆଗକୁ ଆଉ ଯାଇ ପାରନ୍ତି ନାହିଁ । ଏହାର ବହୁ ସମୟ ପରେ ସେମାନଙ୍କର ଗନ୍ଧକୁ ବାରି ପୁନର୍ବାର ସେମାନଙ୍କର ଗନ୍ତବ୍ୟସ୍ଥଳୀ କୁ ଯାତ୍ରା କରିଥାନ୍ତି ।

ଶିକାରୀ ପିମ୍ପୁଡ଼ି ଶିକାର ଉପରେ ଏକାକୀ ଆକ୍ରମଣ କରିନଥାଏ । ନିଜର ଦଳ ସହିତ ଆକ୍ରମଣ କରେ । ପ୍ରଥମେ ଯେଉଁ ପିମ୍ପୁଡ଼ି ଶିକାରକୁ ଠାବ କରେ ସେ ଶିକାର ଦେଖି ଫେରିଆସେ । ସେ ଫେରିବା ବାଟରେ ତାର ଗନ୍ଧକୁ ଛାଡ଼ିଥାଏ, କାରଣ ସେ ତାର ଶିକାରକୁ ଯେପରି ଭୁଲି ନଯାଏ । ସେ ତା'ର ଶୁଣ୍ଢ ସାହାଯ୍ୟରେ ଅନ୍ୟ ପିମ୍ପୁଡ଼ିମାନଙ୍କୁ ଆଘାତ ଦେଇ ଶିକାର ସମ୍ବନ୍ଧରେ ଜଣେଇଦିଏ ଓ ଶିକାର ପ୍ରତି ଆକ୍ରମଣ କରିବାକୁ ସଙ୍କେତ ଦିଏ ଓ ସେ ଯେଉଁ ବାଟେ ଫେରିଥାଏ ସେହି ବାଟରେ ଅଗ୍ରସର ହୁଏ । ତେଣୁ ଦଳଗତ ଆକ୍ରମଣ ପାଇଁ ଏମାନେ ଧାଡ଼ିବାନ୍ଧି ଚାଲନ୍ତି ।



# ମଣିଷ କାନ୍ଦେ କାହିଁକି ?

ଆମ ଦୁଇଆଖିର ବାହାରପାଖ କଣରେ ଦୁଇଟି ଲୋତକଗ୍ରନ୍ଥି ରହିଛି । କେତେକ ସୂକ୍ଷ୍ମତନ୍ତୁ ମାଧ୍ୟମରେ ଏହି ଗ୍ରନ୍ଥିରୁ ଲୁହ ଝରିଆସେ । ଆମ ଦୁଇଆଖିର ଉପରପତା ଦୁଇଟି ହାରାହାରି ପ୍ରତି ଛ'ସେକେଣ୍ଡରେ ଥରେ ଲେଖାଏଁ ତଳ ଉପର ହୋଇଥାନ୍ତି । ଆଖି ମିଟି ମିଟି ହେବା ସମୟରେ ଟିକିଏ ଟିକିଏ ଲୁହ ଝରିଆସି ଆଖିର ଭିତରକୁ ଆଲୋକ-ପ୍ରବେଶ ପଥ ସୃଷ୍ଟିକରୁଥିବା କନିନିକା ଓ ଆଖିଡ଼ୋଳାକୁ ଭିଜାଇ ଦିଏ ।

ମଣିଷ ଜୋରରେ ହସିବାବେଳେ ଲୋତକଗ୍ରନ୍ଥିର ନିକଟସ୍ଥ ମାଂସପେଶୀ ସବୁ ସଙ୍କୁଚିତ ହେବାଫଳରେ ଲୋତକଗ୍ରନ୍ଥି ଚାପିହୋଇ ଆଖିରୁ ଲୁହ ଝରିଆସେ । ବାହାରର ଧୂଳିମଳି, ଧୂଆଁ, କଟା ପିଆଜର ଉଦ୍‌ବାୟୀ ବାଷ୍ପ, ଶୀତଳ ପବନ ଆଦିର ସଂସ୍ପର୍ଶରେ ଆସିଲେ ସେ'ସବୁ ଅନିଷ୍ଟକାରୀ ପଦାର୍ଥକୁ ଧୋଇଦେବାପାଇଁ ମଧ୍ୟ ଆଖିରୁ ଲୁହ ଝରେ । ଫଳରେ ଆମେ କାନ୍ଦିଥାଉ ।

ମଣିଷ କାନ୍ଦି ଦେଲେ ମନର ଦୁଃଖ କମିଯାଏ । ତେଣୁ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଦୁଃଖରେ ଆମେ କାନ୍ଦିଥାଉ । ଏହା ପ୍ରକାରାନ୍ତରେ ଲାଭଦାୟକ ।

ସୁଖଦୁଃଖରେ ଆମେ ଭାବପ୍ରବଣ ହୋଇଗଲେ ଆମର ମାନସିକ ଆବେଗକୁ ପାଟିରେ ପ୍ରକାଶ କରିବା ଆଗରୁ ଆମ ଆଖିକଣରେ ଲୁହ ଝରିଆସେ । ଏପରି ସ୍ଥଳେ ଆବେଗର ପରିପ୍ରକାଶ ପାଇଁ ଆମ ପାଟିରେ ଭାଷା ଉଚ୍ଚାରଣ ହେବା ଆଗରୁ ସେହି ଆବେଗ ଆମ ମସ୍ତିଷ୍କକୁ ଆନ୍ଦୋଳିତ କରିପକାଏ । ମସ୍ତିଷ୍କ ଚାପରେ ଲୋତକ ଗ୍ରନ୍ଥିରୁ ଲୁହଝରିଆସେ । ଆମପାଇଁ କାନ୍ଦିବାର ଆବଶ୍ୟକତା ଏକାନ୍ତ ଅପରିହାର୍ଯ୍ୟ । କାରଣ କାନ୍ଦ ହିଁ ଆଖି ସଫାକରେ, ଡୋଳାକୁ ଓଦାରଖେ ଏବଂ ମାନସିକ ଦୁଃଖ କମାଇଥାଏ । ଥରେ କାନ୍ଦି ଦେଲେ ମଣିଷ ହୃଦୟ ଭିତରେ ଥିବା ରାଗ ଓ ଦୁଃଖ ବହୁ ପରିମାଣରେ କମିଯାଇଥାଏ । ତେଣୁ ମଣିଷ କାନ୍ଦିଥାଏ ।

# ବୃଦ୍ଧ ଅବସ୍ଥାରେ ଦୃଷ୍ଟିଶକ୍ତି କ୍ଷୀଣ ହୋଇପଡ଼େ କାହିଁକି ?

ଯୌବନାବସ୍ଥାରେ ଚକ୍ଷୁର ଲେନସ୍ (ଯେଉଁଥିରେ ଆଲୋକ ରଶ୍ମି କେନ୍ଦ୍ରୀଭୂତ ବିକେନ୍ଦ୍ରୀଭୂତ ହୋଇଥାଏ) ଗୁଡ଼ିକ ବ୍ୟାପକ ସ୍ଥିତିସ୍ଥାପକ ଓ ସଙ୍କୋଚନ ପ୍ରସାରଣଶୀଳ ହୋଇଥାଏ । ତେଣୁ ଦୃଶ୍ୟମାନ ହେବାକୁ ଥିବା ବସ୍ତୁର ଆଲୋକ ରଶ୍ମି ପାଖରେ କିମ୍ବା ଦୂରରେ ହେଉ ସଦାବେଳେ ଚକ୍ଷୁର ରେଟିନା ଉପରେ ପଡ଼ିଥାଏ । ତେଣୁ ଜଣେ ବ୍ୟକ୍ତି ଆଖିଖୋଲି ପାଖ ବସ୍ତୁକୁ ଦେଖିଲାମାତ୍ରେ ଲେନ୍‌ସ ଦୁଇଟି ଗୋଲାକୃତି ଆକାର ଧାରଣ କରି ଅଧିକ କ୍ଷମତାଶୀଳ ହୋଇଥାଏ । ବୟସର ପ୍ରାବଲ୍ୟରେ ଏହି ଲେନ୍‌ସରେ ସଂଲଗ୍ନ ମାଂସପେଶୀଗୁଡ଼ିକ କଠିନ ହୋଇ ଚଳନହୀନ ହୋଇପଡ଼େ । ତେଣୁ କେବଳ ଦୂର ବସ୍ତୁରୁ ନିର୍ଗତ ରଶ୍ମି ରେଟିନାରେ ପତିତ ହୁଏ ଓ ଦୂର ଜିନିଷ କେବଳ ଦେଖାଯାଏ । ଏହି କାରଣରୁ ବୃଦ୍ଧାବସ୍ଥାରେ ଦୃଷ୍ଟିଶକ୍ତି କ୍ଷୀଣ ହୋଇପଡ଼େ ।



# ଘର ଭିତରେ ଆଲୋକ ଜଳାଇ ଟିଭି ଦେଖିବା ଉଚିତ କାହିଁକି ?

ଟେଲିଭିଜନ ଏକ ମନୋରଞ୍ଜନଧର୍ମୀ ଗଣ ମାଧ୍ୟମ । ଜଣାଯାଏ ଭାରତର ପ୍ରାୟ ଗ୍ରାମମାନଙ୍କରେ ଦୂରଦର୍ଶନ ପ୍ରସାରଣ ପହଞ୍ଚିପାରିଛି । ଟିଭି ଦେଖିବାକୁ ଛୋଟରୁ ବଡ଼ ପର୍ଯ୍ୟନ୍ତ ସମସ୍ତେ ଭଲପାଆନ୍ତି । କିନ୍ତୁ ଯେଉଁମାନେ ଘର ଭିତରେ ଆଲୋକ ନ ଜାଳି ଟିଭି ଦେଖନ୍ତି ତା'ର କୁପରିଣାମ ଜାଣିପାରନ୍ତି ନାହିଁ ।

କୌଣସି ବସ୍ତୁକୁ ଦେଖିବାପାଇଁ ଚକ୍ଷୁ ଆବଶ୍ୟକ ପରିମାଣର ଆଲୋକ ଲୋଡ଼ିଥାଏ । ଆଲୋକର ତୀବ୍ରତା ଅନୁଯାୟୀ ଆମ ଚକ୍ଷୁତାରା ବଡ଼ ବା ସାନ ହୋଇଥାଏ । ଲକ୍ଷ୍ୟ କରିବା କଥା ଯେ, ଟିଭି ପରଦାରେ ଆଲୋକର ତୀବ୍ରତା ଅହରହ ବଦଳୁଥାଏ ।  ଏହି କାର୍ଯ୍ୟ ସମ୍ପାଦନ ପାଇଁ କନିନିକାର ମାଂସପେଶୀ ଅନବରତ ଚାପର ସମ୍ମୁଖୀନ ହୁଏ । ଏହି ପ୍ରକ୍ରିୟା ନିରନ୍ତର ଲାଗିରହିଲେ ତାହା ଚକ୍ଷୁର ସ୍ୱାଭାବିକ ଶକ୍ତିକୁ ନଷ୍ଟ କରିଦେଇପାରେ ।

ଅନ୍ଧାର ଘରେ କମ୍ ଆଲୋକ ବେଳେ ଚକ୍ଷୁତାରା ବିସ୍ତାରିତ ହୋଇଥାଏ । ହଠାତ୍ ପରଦାରେ ଅଧିକ ଆଲୋକ ଆସିଗଲେ ମେଞ୍ଚାଏ ତୀବ୍ର ଆଲୋକର ଝଲକ ବିସ୍ତାରିତ ଚକ୍ଷୁତାରା ଦେଇ ଚକ୍ଷୁମଧ୍ୟକୁ ପ୍ରବେଶ କରିଯାଏ କାରଣ ଚକ୍ଷୁ ମଧ୍ୟକୁ ଅଧିକ ଆଲୋକକୁ ଛାଡ଼ିନଦେବା ପାଇଁ ଚକ୍ଷୁତାରାକୁ ସଙ୍କୁଚିତ ହେବା ପାଇଁ ପୁଣି ତ କିଛି ସମୟ ଆବଶ୍ୟକ । ତେବେ ଏପରି ଘଟି ଅତ୍ୟଧିକ ଆଲୋକ ହେତୁ ଚକ୍ଷୁ ନଷ୍ଟ ହେବାର ସମ୍ଭାବନା ଥାଏ ।

ଏ ଦୃଷ୍ଟିରୁ ଘରକୁ ସମ୍ପୂର୍ଣ୍ଣ ଅନ୍ଧାର ନ ରଖି ଅନ୍ତତଃ ଅଳ୍ପ ପାୱାର୍‌ର ବଲ୍‌ବଟାଏ ଜଳାଇ ରଖି ଟିଭି ଦେଖିବା ବାଞ୍ଛନୀୟ । କିନ୍ତୁ ସବୁଠାରୁ ଭଲ ଉପାୟ ହେଲା ଯେ ଟିଭି ପଛ ପଟେ ଉପରକୁ ଏକ ଶୁଭ୍ର ଆଲୋକ (ବାର ଲାଇଟ୍) ଲଗାଇ ଟିଭି ଦେଖିଲେ ସେହି ଶୁଭ୍ର ଆଲୋକ ନିଜ ଆଖିରେ ପଡ଼ିଥାଏ । ତେଣୁ ଟିଭିର ଆଲୋକ ନିଜ ଆଖିରେ ବିଶେଷ କିଛି ପ୍ରଭାବ ପକାଇପାରେ ନାହିଁ । ତେବେ ଟିଭି ପରଦାରେ କମ୍ ଆଲୋକ ଆସିଲେ ବି ବଲବ୍‌ର ଆଲୋକରେ ଘରଟି ଆଲୋକିତ ହୋଇଥିବ । ତେଣୁ ଚକ୍ଷୁତାରା ଅନ୍ଧାରରେ ଯେମିତି ମାତ୍ରାଧିକ ବିସ୍ତାରିତ ହେବାକୁ ବାଧ ହୋଇଥାଏ ସେପରି ବିସ୍ତାରିତ ହେବ ନାହିଁ । ଅର୍ଥାତ୍ ଅତ୍ୟଧିକ ବିସ୍ତାରିତ ଓ ସଙ୍କୁଚିତ ହେବାର ବ୍ୟବଧାନଟା ସ୍ୱତଃ କମିଯିବ । ତେଣୁ ଟିଭି ଦେଖିଲାବେଳେ ସବୁବେଳେ ଆଲୋକ ଜାଳି ଟିଭି ଦେଖିବା ଉଚିତ ।

# ଘୁଷୁରି କାଦୁଅ ବୋଳି ହୁଏ କାହିଁକି ?

ଘୁଷୁରି ଏକ ଗୃହପାଳିତ ପଶୁ । ଅଧିକାଂଶ ଗାଁ ଓ ସହରର ବହୁ ଲୋକେ ଘୁଷୁରି ପାଳନ କରନ୍ତି । ଘୁଷୁରି ନିଜ ଦେହରେ କାଦୁଅ ବୋଳି ହେଉଥିବାରୁ ତାକୁ ଅଧିକାଂଶ ଲୋକେ ଘୃଣା କରନ୍ତି । ତେବେ ଘୁଷୁରି କାଦୁଅ ବୋଳି ହୁଏ କାହିଁକି ?

ମାଟିରେ ଏପରି କେତେ ଗୁଣ ରହିଛି ତାହା ଔଷଧ ଭଳି କାମ କରିଥାଏ । ଏପରି କି ପୁରାତନ କାଳରେ ମଣିଷମାନେ ମଧ୍ୟ ମାଟି ବୋଳି ହୋଇ କେତେକ ରୋଗରୁ ଆରୋଗ୍ୟ ହେଉଥିଲେ । ଏହି ମାଟି ବୋଳି ହୋଇ ଯେଉଁ ଚିକିତ୍ସା କରାଯାଉଥିଲା ତାହା ମାଟି ଚିକିତ୍ସା ନାମରେ ନାମିତ । ଏବେ ମଧ୍ୟ କେତେକ ଗାଁ ରେ ଓ କେତେକ ଦେଶରେ ଏହି ଚିକିତ୍ସା କରାଯାଉଛି ।

ଘୁଷୁରି ମାଟି ବୋଳି ହେବା ଦ୍ୱାରା ତା ଦେହରେ ଲାଗିଥିବା ଜୀବାଣୁମାନେ ମରିଯାଇଥାନ୍ତି ଏବଂ ମାଟି ବୋଳି ହେବା ଦ୍ୱାରା ସେ ତା ଦେହକୁ ଥଣ୍ଡା ରଖିଥାଏ ।



# ପତଙ୍ଗ ନିଆଁ ଆଡ଼କୁ ଆକର୍ଷିତ ହୁଅନ୍ତି କାହିଁକି ?

ରାତିରେ ଦୀପଟିଏ ଜାଳିଲେ ନିରୀହ ପତଙ୍ଗ ଗୁଡ଼ାକ ସଙ୍ଗେ ସଙ୍ଗେ କେଉଁଠୁ ଉଡ଼ିଆସନ୍ତି ସେହି ଦୀପଶିଖା ଆଡ଼କୁ । କେହି ଦୀପଶିଖା ଚାରିପଟେ ଘୂରିଯାଏ ତ କେହି ନିର୍ବିଚାରରେ ଲେଲିହାନ ଅଗ୍ନିଶିଖା ମଧ୍ୟକୁ ପ୍ରବେଶ କରିଯାଏ । ଜ୍ୱଳନ୍ତ ଶିଖାର ଭୟାବହ ଜାଣିବାବେଳକୁ ବିଚରା ପତଙ୍ଗ ଆଉ ଫେରିଯିବାର ସମୟ ନଥାଏ । ତେବେ ପତଙ୍ଗ ଦୀପଶିଖା ଆଡ଼କୁ ଆକର୍ଷିତ ହୁଏ କାହିଁକି ?

ମାଈ ପତଙ୍ଗର ଶରୀରର ଶେଷ ଅଂଶର ଏକ ଗ୍ରନ୍ଥିରୁ ଏସିଟେଟ୍ ନାମକ ଏକ ପ୍ରକାର ରାସାୟନିକ ପଦାର୍ଥ ନିର୍ଗତ ହୁଏ । ଏହି ରାସାୟନିକ ପଦାର୍ଥରୁ ଅବଲୋହିତ ରଶ୍ମି ବାହାରିଥାଏ । ଏହି ଅବଲୋହିତ ରଶ୍ମିକୁ ଦେଖି ପୁରୁଷ ପତଙ୍ଗ ମାଈ ପତଙ୍ଗର ଉପସ୍ଥିତି ଜାଣିପାରେ । ତେଣୁ ଏହି ଅବଲୋହିତ ରଶ୍ମି ଉତ୍ସ ଆଡ଼କୁ ପୁରୁଷ ପତଙ୍ଗଟି ଆକର୍ଷିତ ହୋଇଥାଏ ।

ଆଶ୍ଚର୍ଯ୍ୟର କଥା ଯେ, ପ୍ରତ୍ୟେକ ପ୍ରକାର ଆଲୋକ ଜଳିବା ବେଳେ କିଛି ପରିମାଣର ଅବଲୋହିତ ରଶ୍ମି ନିର୍ଗତ ହୋଇଥାଏ । ପୁରୁଷ ପତଙ୍ଗ ଏହାକୁ ମାଈ ପତଙ୍ଗର ଉପସ୍ଥିତି ବୋଲି ଏକ ଭୁଲ୍ ବୁଝାମଣାରେ ପଡ଼ି ଆଲୋକ ଉତ୍ସ ଆଡ଼କୁ ମୁହାଁଏ । ମାଈ ପତଙ୍ଗର ଅନ୍ୱେଷଣରେ ମାତିଥିବା ପୁରୁଷ ପତଙ୍ଗଟି ଆଲୋକ ଉତ୍ସର ଏହି ରହସ୍ୟ ବୁଝିନପାରି ନିଆଁ ଆଡ଼କୁ ଆକର୍ଷିତ ହୋଇ ଚାଲିଯାଇଥାଏ ।



# ବିଦ୍ୟୁତ୍ ତାରକୁ ଛୁଇଁଲେ ଆମକୁ ସକ୍ ମାରେ କାହିଁକି ?

ବିଜୁଳିଶକ୍ତି ବାସ୍ତବରେ ଆମର ଯେତିକି ଉପକାରୀ ସେତିକି ବିପଦଜନକ ମଧ୍ୟ । ଦୈବାତ୍ ବିଜୁଳିତାରକୁ ଛୁଇଁଦେଲେ ଆମକୁ ସକ୍ ମାରିଥାଏ । ହାତ ଛିଣ୍ଡାଡ଼ି ଦିଏ ଏବଂ ବେଳେ ବେଳେ ବିଦ୍ୟୁତ୍ ସ୍ପର୍ଶରେ ଆମର ମୃତ୍ୟୁ ମଧ୍ୟ ହୋଇଥାଏ ।

ଆମ ଦେହ ଦେଇ ବିଦ୍ୟୁତ୍ ଚାର୍ଜ ଗତି କରିପାରେ । ତଥାପି ଆମ ଦେହରେ ଥିବା ବିଦ୍ୟୁତ୍ ପ୍ରତିରୋଧକତା ଖୁବ୍ କମ୍ । ଆମ ଚର୍ମ ତଳେ ଏହି ପ୍ରତିରୋଧକ ଶକ୍ତି ଥାଏ । ଚର୍ମ ଓଦାଥିଲେ ଏହି ପ୍ରତିରୋଧକତା ବହୁତ ଖସିଆସେ । ଆମ ଦେହର ବିଦ୍ୟୁତ୍ ପ୍ରତିରୋଧକତା ଯେତିକି କମି ଆସେ, ଶରୀରରେ ବିଦ୍ୟୁତ୍ ପ୍ରବାହର ସମ୍ଭାବନା ସେତେ ଅଧିକ ବଢ଼ିଯାଏ । ନିରାପଦ ମାତ୍ରାଠାରୁ ଅଧିକ ବିଦ୍ୟୁତ୍ ଆମକୁ ଧକ୍କା ଦେବା ଦ୍ୱାରା ଆମ ମସ୍ତିଷ୍କରେ ଥିବା ଶ୍ୱାସପ୍ରଶ୍ୱାସ ନିୟନ୍ତ୍ରଣକାରୀ କେନ୍ଦ୍ର ଅଚଳ ହୋଇଯାଏ । ଏଣୁ ବିଜୁଳି ଆଘାତ ଖାଇବା ମାତ୍ରେ ମଣିଷ ବେହୋସ ହୋଇପଡ଼େ । ହୃତ୍‌ପିଣ୍ଡର ସଂକୋଚନ ପ୍ରସାରଣରେ ଅନିୟମିତତା ଦେଖାଦିଏ ଏବଂ ରକ୍ତ ସଞ୍ଚାଳନ ବାଧାପାଏ । ବିଦ୍ୟୁତାଘାତ ବ୍ୟକ୍ତିକୁ ସଙ୍ଗେ ସଙ୍ଗେ ଗରମ କ୍ଷୀର ପିଆଇବା ଉଚିତ ଏବଂ ଓଦାଠାରୁ ସମ୍ପୂର୍ଣ୍ଣ ଦୂର ରଖିବା ନିହାତି ଜରୁରୀ ।

ରବର, ପ୍ଲାଷ୍ଟିକ୍ ପରି ବିଦ୍ୟୁତ୍ ପ୍ରତିରୋଧ ଯୋତା ପିନ୍ଧି ଆମେ ବୈଦ୍ୟୁତିକ କାର୍ଯ୍ୟ କରିବା ଉଚିତ । ଗାଁ ଗହଳିରେ ତଥା ସହରର କେତେକ ସ୍ଥାନରେ ଲୋକମାନେ ହୁକ ପକାଇ ବିଦ୍ୟୁତ ବ୍ୟବହାର କରିଥାନ୍ତି । ଏହି ବିଦ୍ୟୁତ୍ ବ୍ୟବହାର କରୁଥିବା ବ୍ୟକ୍ତି ଯଦି ବିଦ୍ୟୁତ୍ ଆଘାତ ପାଏ ତେବେ ସେ ବଞ୍ଚିବା ସମ୍ଭାବନା କମ୍ କାରଣ ଆମେ ଆମ ଘରୋଇ ବ୍ୟବହାର ପାଇଁ ଆଣିଥିବା ବିଦ୍ୟୁତ୍‌ରେ ମେନ୍ ସୁଇଚ୍ ଥାଏ । ଏହି ମେନ୍ ସୁଇଚ୍‌ରେ କଟ୍‌ଆଉଟ୍ ଲାଗିଥାଏ, ଏହି କଟ୍‌ଆଉଟ୍‌ରେ ଏକ ସୂକ୍ଷ୍ମ ତାର ବନ୍ଧାଯାଇଥାଏ । ଯେତେବେଳେ ଆମକୁ ବିଦ୍ୟୁତ୍ ଆଘାତ ଲାଗେ ବା ତାରକୁ ତାର ଯୋଡ଼ି ହୋଇଯାଏ ତେବେ ଏହି କଟ୍‌ଆଉଟ୍ ଭିତରେ ଥିବା ସୂକ୍ଷ୍ମ ତାରଟି କଟିଯାଇ ବିଦ୍ୟୁତ୍ ସଂଯୋଗ ବିଚ୍ଛିନ୍ନ ହୋଇଥାଏ । ତେଣୁ ସମସ୍ତେ ମନେ ରଖିବା ଉଚିତ ଯେ କେବେ ହେଲେ ହୁକ ପକାଇ ବିଦ୍ୟୁତ୍ ବ୍ୟବହାର କରିବା ଉଚିତ ନୁହେଁ ।

# ମରୀଚିକା ମରୁଭୂମି ଓ ପିଚୁ ରାସ୍ତାରେ ଦେଖାଯାଏ କାହିଁକି ?

ମରୁଭୂମି ବାଲିରେ ପୂର୍ଣ୍ଣ । ସୂର୍ଯ୍ୟଙ୍କର ଲମ୍ବ କିରଣ ଏହି ବାଲି ଉପରେ ପଡ଼ିବା ଫଳରେ ଏହା ଶୀଘ୍ର ଉତ୍ତପ୍ତ ହୁଏ । ତେଣୁ ତାପର ବିକିରଣ ହେତୁ ଭୂପୃଷ୍ଠର ବାୟୁକୁ ଏହା ଉତ୍ତପ୍ତ କରିବା ଫଳରେ ବାୟୁ ପ୍ରସାରିତ ହୁଏ । ଫଳରେ ଭୂପୃଷ୍ଠ ଉପରେ ଥିବା ସ୍ତରକୁ ଘନ ମାଧ୍ୟମ ଓ ନିମ୍ନରେ ଥିବା ବାୟୁ ସ୍ତରକୁ ଲଘୁ ମାଧ୍ୟମ କୁହାଯାଏ । କୌଣସି ଆଲୋକ ରଶ୍ମି ଉପରୁ ତଳକୁ ଆସିଲାବେଳେ କ୍ରମଶଃ ହାଲୁକା ସ୍ତରକୁ ଆସୁଥିବାରୁ ପ୍ରତିସୃତ ହୋଇ ଅଭିଲମ୍ବଠାରୁ ଦୂରେଇଯାଏ । ଫଳରେ ଆପତନ କୋଣ କ୍ରମଶଃ ବୃଦ୍ଧିପାଏ । ଯେତେବେଳେ ଏହା କୌଣସି ଦୁଇଟି ସ୍ତରର ଚରମ କୋଣଠାରୁ ବୃହତ୍ତର ହୁଏ ସେତେବେଳେ ଆଲୋକ ରଶ୍ମି ପ୍ରତିସୃତ ନ ହୋଇ ଉପରକୁ ପୂର୍ଣ୍ଣ ପ୍ରତିଫଳିତ ହୁଏ । ତେଣୁ ପଥିକକୁ ଗଛ ପ୍ରଭୃତି ବସ୍ତୁର ଏକ ଓଲଟା ପ୍ରତିବିମ୍ବ ଦେଖାଯାଏ । ଏହାକୁ ମରୀଚିକା କହନ୍ତି ।



# କୂଅ ବା ନଳକୂଅ ମୂଳରେ ଗାଧୋଇବା, ଲୁଗା ସଫା କରିବା ମନା କାହିଁକି ?

ଆମେ ବ୍ୟବହାର କରୁଥିବା ପାଣି ସାଧାରଣତଃ କୂଅ, ନଳକୂଅରୁ ଆଣିଥାଉ । ଏହି କୂଅ ଓ ନଳକୂଅ ମାଟି ମଧ୍ୟରୁ ପାଣିକୁ ଝରମାଧ୍ୟମରେ ଆଣିଥାଏ ।

ଆମେ ନଳକୂଅ ବା କୂଅ ପାଖରେ ଗାଧୋଇଲେ ବା ଲୁଗା ସଫା କରିବା ଦ୍ୱାରା ସେହି ବିଶୁଦ୍ଧ ଜଳ ପୁନର୍ବାର କୂଅ ମଧ୍ୟକୁ ପ୍ରବେଶ କରିଥାଏ । ଆମେ ସେହି ଜଳକୁ ପାନୀୟ ଭାବେ ଗ୍ରହଣ କରିଥାଉ । ଏହି ବିଶୁଦ୍ଧ ଜଳକୁ ଆମେ ବ୍ୟବହାର କରିବା ଦ୍ୱାରା ଆମର ଶରୀରରେ ବହୁ ପ୍ରକାର ରୋଗ ଦେଖାଦେଇଥାଏ । ପେଟ ବେମାରୀ ଠାରୁ ଆରମ୍ଭ କରି ଚର୍ମ ରୋଗ ମଧ୍ୟ ହୋଇଥାଏ ।

କୂଅ ଓ ନଳକୂଅ ନିକଟରେ ଆମେ ଗାଧୋଇଲେ ବା ଲୁଗା ସଫା କଲେ ସେହି କୂଅ ଚାରିପଟେ ପାଣି ଜମି ରହିବା ଦ୍ୱାରା ସେଠାରେ ମଶା, ମାଛିମାନେ ସେମାନଙ୍କର ଡିମ୍ବ ଦେଇ ବଂଶ ବିସ୍ତାର କରିଥାନ୍ତି ଏବଂ ସେଠାରେ ପାଣି ଜମି ରହିବା ଦ୍ୱାରା ପାଣି ପଚି ଦୁର୍ଗନ୍ଧମୟ ହୋଇ ଅସ୍ୱାସ୍ଥ୍ୟକର ପରିବେଶ ସୃଷ୍ଟି ହୋଇଥାଏ । ଏହାକୁ ମଧ୍ୟ ଜଳ ଓ ବାୟୁ ପ୍ରଦୂଷଣ କହିଥାଉ । ଏହି ପ୍ରଦୂଷଣରୁ ରକ୍ଷା ପାଇବା ପାଇଁ ତାହାର ଚାରିପଟେ ସଫା ସୁତୁରା ରଖିବା ଉଚିତ ଓ ସେଠାରେ ଗାଧୋଇବା ଅନୁଚିତ ।



# ଛୁରୀ, ପନିକି ଅପେକ୍ଷା ଗୁଆ କାତିରେ ଗୁଆ ଭଲ କାଟି ହୁଏ କାହିଁକି ?

ଗୁଆକାତି ୨ୟ ଶ୍ରେଣୀୟ ଭାରଦଣ୍ଡ । ଏହାର ଗୋଟିଏ ପଟରେ ଆଲମ୍ବ ବିନ୍ଦୁ ଓ ଅନ୍ୟ ପାର୍ଶ୍ୱରେ ବଳ ପ୍ରୟୋଗ କରାଯାଏ । ତେଣୁ ବଳବାହୁ ଭାରବାହୁ ଅପେକ୍ଷା ଦୀର୍ଘତର ହୋଇଥାଏ କାରଣ ଆମ ହାତ ପାଖରୁ ଗୁଆ ରହିବାର ସ୍ଥାନ ଛୋଟ ବା ଅଳ୍ପ ଦୂରରେ ଥାଏ । ଫଳରେ ଯାନ୍ତ୍ରିକ ଲାଭ ଅଧିକ ହୋଇଥିବାରୁ ଅଳ୍ପ ବଳ ପ୍ରୟୋଗ କରି ଖୁବ୍ ଟାଣ ଗୁଆଟି କାଟିଦେଇ ହୁଏ । ପନିକିରେ ଯେଉଁଠାରେ ଆମେ ବଳ ପ୍ରୟୋଗ କରୁ ସେହିଠାରେ ହିଁ ଭାର ରହିଥାଏ । ଫଳରେ ଭାରବାହୁ ଓ ବଳବାହୁ ସମାନ ହେତୁ ଯାନ୍ତ୍ରିକ ଲାଭ ଅଧିକ ହୁଏ ନାହିଁ । ତେଣୁ ଆମକୁ ଅଧିକ ବଳ ପ୍ରୟୋଗ କରିବାକୁ ପଡ଼େ ।

# ପ୍ରତି ୪ ବର୍ଷରେ ଫେବୃୟାରୀ ମାସ ୨୯ ଦିନ ହୁଏ କାହିଁକି ?

କୃଷ୍ଣପକ୍ଷ ଓ ଶୁକ୍ଳ ପକ୍ଷ ମିଶି ଚାନ୍ଦ୍ରମାସ ହୁଏ । ଏହି ଚାନ୍ଦ୍ରମାସରେ ଚନ୍ଦ୍ର ପୃଥିବୀକୁ ଥରେ ମାତ୍ର ପରିକ୍ରମା କରିଥାଏ । ୧୨ ଗୋଟି ଚାନ୍ଦ୍ର ମାସରେ ଏକ ଚାନ୍ଦ୍ର ବର୍ଷ ହୁଏ । ଚାନ୍ଦ୍ର ବର୍ଷର ପରିମାଣ ୩୫୪ ଦିନ । ପୃଥିବୀ ସୂର୍ଯ୍ୟଙ୍କୁ ୩୬୫.୧/୪ ଦିନରେ ଥରେ ପରିକ୍ରମଣ କରେ । ମାତ୍ର ଆମେ ସୌର ବର୍ଷକୁ ୩୬୫ ଦିନ ବୋଲି ଧରିନେଉ । ପ୍ରତିବର୍ଷ ଆମେ ୧/୪ ଦିନ ବାଦ ଦେଇଦେଉ । ଏହିପରି ୪ ବର୍ଷରେ ଗୋଟିଏ ଦିନ ବାଦ ପଡ଼ିଯାଏ । ଏହି ଦିନଟିକୁ ପ୍ରତି ୪ ବର୍ଷରେ ଥରେ ବର୍ଷର ସବୁଠାରୁ ସାନ ମାସ ଫେବୃୟାରୀ ମାସରେ ମିଶାଇଦିଆଯାଏ । ତେଣୁ ପ୍ରତି ୪ ବର୍ଷରେ ଫେବୃୟାରୀ ମାସ ୨୯ ଦିନ ହୁଏ ।

# ନିୟମିତଭାବେ ଧୂମକେତୁ ଦେଖାଯାଏ ନାହିଁ କାହିଁକି ?

ଗ୍ରହ ଉପଗ୍ରହ ପରି ଧୂମକେତୁ ଏକ ଜ୍ୟୋତିଷ୍କ । ସୂର୍ଯ୍ୟ ଆଲୋକରେ ପ୍ରତିଫଳିତ ହୋଇ ଏହା ଆମକୁ ଦେଖାଯାଏ । ହାଲି ଧୂମକେତୁ ପ୍ରତି ୭୬ ବର୍ଷ ଅନ୍ତରରେ ଦେଖାଦେଇଥାଏ । ଧୂମକେତୁର ଶିଳା ଅଂଶ ଭିନ୍ନ । କିଛି ଗ୍ୟାସ୍ ବି ଏଥିରେ ଥାଏ । କଠିନ ଶିଳାଖଣ୍ଡ ସୂର୍ଯ୍ୟ ଦ୍ୱାରା ଆକର୍ଷିତ ହେଲାବେଳେ ଏହାର ଗ୍ୟାସୀୟ ହାଲୁକା ଅଂଶ ପୁଚ୍ଛ ଭଳି ଦେଖାଯାଏ । ଧୂମକେତୁ ଆମର କିଛି କ୍ଷତି କରେ ନାହିଁ ।

# ଲୁଣ, ଚିନି ଭଳି ବାଲି ଇତ୍ୟାଦି ଜଳରେ ଦ୍ରବଣୀୟ ନୁହେଁ କାହିଁକି ?

ଦ୍ରବ ଦ୍ରାବକରେ ଦ୍ରବୀଭୂତ ହୋଇ ଏକ ସମ୍ପୂର୍ଣ୍ଣ ସମଜାତୀୟ ମିଶ୍ରଣ ହେଲେ ତାହାକୁ ଦ୍ରବଣ କୁହାଯାଏ । ଜଳ ଅଣୁର ଦ୍ରବୀୟ ପ୍ରକୃତି ଥିବାରୁ ସେଥିରେ ଦ୍ରବ ଦ୍ରବୀଭୂତ ହୋଇ ଦ୍ରବର ଅଣୁ ଅଣୁ ମଧ୍ୟରେ ଥିବା ଆକର୍ଷଣ ବଳ ଯୋଗୁ ଦ୍ରବଣରେ ଅଣୁ ଗୋଟିକିଆ ନ ରହି ଏକାଠି ରହେ । ଦ୍ରାବକର ଅଣୁ ଅଣୁ ମଧ୍ୟରେ ଆକର୍ଷଣ ବଳ ଥିବାରୁ ସେମାନଙ୍କୁ ଅଲଗା କରିବା ପାଇଁ ଶକ୍ତି ଆବଶ୍ୟକ ହୁଏ । ଦ୍ରାବକ ସଂସ୍ପର୍ଶରେ ଦ୍ରବ ଆସିଲେ ଦ୍ରବୀକରଣ ଘଟିବା ଫଳରେ ଶକ୍ତି ଉତ୍ପନ୍ନ ହୋଇଥାଏ । ଏହାକୁ ଦ୍ରବୀକରଣ ଶକ୍ତି କୁହାଯାଏ । ଲୁଣ, ଚିନି ଆଦି ଦ୍ରବୀକରଣ ଶକ୍ତି ଦ୍ରବର ଓ ଦ୍ରାବକର ଅଣୁ ମଧ୍ୟସ୍ଥବଳଠାରୁ ଯଥେଷ୍ଟ ବେଶୀ । ତେଣୁ ଏହା ସହଜରେ ଜଳରେ ଦ୍ରବୀଭୂତ ହୋଇପାରେ । ବାଲିର ସେପରି ଦ୍ରବୀକରଣ ଶକ୍ତି ନଥିବାରୁ ତାହା ଜଳରେ ଦ୍ରବୀପାରେ ନାହିଁ ।

# ସାବୁନ ଆମ ଦେହ ଓ ଲୁଗା ସଫା କରିବାରେ ସାହାଯ୍ୟ କରେ କାହିଁକି ?

ସାବୁନ ସାଧାରଣତଃ ଚର୍ବିଜାତୀୟ ତେଲ ଓ କ୍ଷାରୀୟ ରାସାୟନିକ ଦ୍ରବ୍ୟର ମିଶ୍ରଣରେ ତିଆରି ହୋଇଥାଏ । ଦେହରୁ କିମ୍ବା ବସ୍ତ୍ରରୁ ମଇଳା ସଫା ହୋଇଯିବା ଏକ ରାସାୟନିକ ପ୍ରକ୍ରିୟା ନୁହେଁ ବରଂ ପ୍ରାକୃତିକ ଓ ପଦାର୍ଥଭିତ୍ତିକ ପ୍ରକ୍ରିୟା ଅଟେ ।

ସାବୁନ ଫେଣଗୁଡ଼ିକ ମଇଳାଗୁଡ଼ିକୁ ଦ୍ରବୀଭୂତ ନ କରି ଶୋଷଣ କରି ଚାରିପଟେ ଏକ ଆବରଣ ସୃଷ୍ଟି କରିଦିଏ । ତେଣୁ ମଇଳାଗୁଡ଼ିକ ଆଉ ଦେହ ବା ଲୁଗା ଉପରେ ଜମିପାରେ ନାହିଁ । ସାବୁନଫେଣଗୁଡ଼ିକ ମଇଳା କଣିକାଗୁଡ଼ିକୁ ହାଲୁକା କରାଇ ଦେଇ ଘର୍ଷଣକୁ ସହଜ କରି ତୋଳେ । ଯେତେବେଳେ ସାବୁନର ପରିମାଣ ବେଶୀ ହୁଏ, ସାବୁନ୍ ଦ୍ୱାରା ସଫା ତ୍ୱରାନ୍ୱିତ ହୁଏ ।

# ନଡ଼ିଆ ଭିତରେ ଥିବା ପାଣି ଖରାପ ହୁଏ ନାହିଁ କାହିଁକି ?

ଯେକୌଣସି ଖାଦ୍ୟ ପଦାର୍ଥ ଖରାପ ହେବା ପାଇଁ ଜୀବାଣୁ ହିଁ ଦାୟୀ । ଖାଦ୍ୟ ପଦାର୍ଥ ଖଟା ହେବା, ଗନ୍ଧାଇବା, ଫିମ୍ପି ମାରିବା ଇତ୍ୟାଦି ଜୀବାଣୁମାନଙ୍କ ଦ୍ୱାରା ହିଁ ହୋଇଥାଏ । ଖାଦ୍ୟ ପଦାର୍ଥକୁ ଜୀବାଣୁ ମୁକ୍ତ ରଖିବା ପାଇଁ କେତେକ ବୈଜ୍ଞାନିକ ଉପାୟ ମଧ୍ୟ ବାହାରିଲାଣି । କେତେକ ଜୀବାଣୁ ଆମ ଆଖିକୁ ଦେଖା ଯାଆନ୍ତି ନାହିଁ କିନ୍ତୁ ତାହା ଖାଦ୍ୟ ପଦାର୍ଥରେ ବସି ତାକୁ ନଷ୍ଟ କରିବାରେ ସାହାଯ୍ୟ କରିଥାନ୍ତି ।

ମାତ୍ର ନଡ଼ିଆର ୩ଟି ଶକ୍ତ ଆବରଣ ଯଥା ଚୋପା, କତା ଏବଂ ସଢ଼େଇ ଦ୍ୱାରା ନଡ଼ିଆ ପାଣି ସୁରକ୍ଷିତ ଥାଏ । ଏହି ସବୁ ସ୍ତର ଯୋଗୁ ଜୀବାଣୁ ନଡ଼ିଆ ପାଣି ପର୍ଯ୍ୟନ୍ତ ପହଞ୍ଚିପାରେ ନାହିଁ । ପୁଣି ନଡ଼ିଆ ପାଣିରେ ଏକ ବୃକ୍ଷଜ ହରମୋନ୍ କାଇନେଟିନ୍ସ ଥାଏ । ଏହା ଏକ ଖାଦ୍ୟ ସଂରକ୍ଷକ ଭାବରେ କାର୍ଯ୍ୟ କରିଥାଏ । ଏହି କାଇନେଟିନ୍ସର ଭୂତାଣୁଙ୍କ ପ୍ରସାରକୁ ପ୍ରତିହତ କରିବାର କ୍ଷମତା ମଧ୍ୟ ରହିଛି । ପଇଡ଼ ପାଣିରେ କାଇନେଟିନ୍ସର ମାତ୍ରା ଅଧିକ ଥିବାରୁ ଆୟୁର୍ବେଦୀୟ ଚିକିତ୍ସାରେ ଏହାର ଉପଯୋଗ କରାଯାଇଥାଏ । ନଡ଼ିଆ ଗଛର ପ୍ରତ୍ୟେକ ଜିନିଷ ଆମର କାମରେ ଆସିଥାଏ ।



# କାହା ବାଳ ସିଧା ତ କାହା ବାଳ କୁଞ୍ଚ କୁଞ୍ଚିଆ ଓ କାହା ବାଳ କଳା ତ କାହା ବାଳ କହରା ହୁଏ କାହିଁକି ?

ପ୍ରତ୍ୟେକ ମଣିଷର ବାଳର ଗଠନରେ କିଛି ନା କିଛି ପରିବର୍ତ୍ତନ ଥିବାର ଦେଖିବାକୁ ମିଳେ । କାହାର ବାଳ ପୂରା ସିଧା, କାହାର ବାଳ ଅଳ୍ପ କୁଞ୍ଚ କୁଞ୍ଚିଆ ତ କାହାର ବାଳ ସମ୍ପୂର୍ଣ୍ଣ କୁଞ୍ଚ କୁଞ୍ଚିଆ ହୋଇଥାଏ ।

ସିଧା ଓ ଲମ୍ୱା ବାଳଗୁଡ଼ିକୁ ନେଇ ଅଣୁ ବୀକ୍ଷଣ ଯନ୍ତ୍ରରେ ଦେଖିଲେ ସେଇ ବାଳ ଗୁଡ଼ିକ ଦେଖିବାକୁ ଗୋଲ୍ ଗୋଲ୍ କିନ୍ତୁ କୁଞ୍ଚ କୁଞ୍ଚିକା ବାଳ ଗୁଡ଼ିକ ଦେଖିବାକୁ ଚେପଟା ବା ଚାରିକଣିଆ । ସେଇଥିପାଇଁ ସେହି ଚେପଟା ବାଳଗୁଡ଼ିକ ସିଧା ହୋଇ ନ ପାରି ମୋଡ଼ି ହୋଇ ରହେ । ସେହି ମୋଡ଼ି ମୋଡ଼ି ହୋଇ ରହିବାକୁ ଆମେ କୁଞ୍ଚ କୁଞ୍ଚିଆ କହିଥାଉ ।

ସେମିତି କେଉଁ ଲୋକର ବାଳ କଳା, କେଉଁ ଲୋକର ବାଳ କହରା ତ କେଉଁ ଲୋକର ବାଳ ଧଳା ହୋଇଥାଏ । ବାଳର ରଙ୍ଗ ଭିନ୍ନ ଭିନ୍ନ ହେବାର କାରଣ ଏହାର ମୂଳରେ ଥିବା ଏକ ରାସାୟନିକ ପଦାର୍ଥ 'ମେଲାନିନ୍' ଯୋଗୁଁ ଏହିପରି ହୋଇଥାଏ । ବାଳ ମୂଳରୁ 'ମେଲାନିନ୍' କମ୍ କମିଗଲେ ବାଳ କହରା ହୋଇଯାଏ । ଯଦି ପୂରା କମିଯାଏ ତେବେ ବାଳ ଧଳା ହୋଇଯାଏ ।





# ପିଲାମାନେ ଚକାଭଉଁରୀ ଘୂରିଲେ ପଡ଼ିଯାନ୍ତି କାହିଁକି ?

କିଛି ଘେରା ଚକାଭଉଁରୀ ଘୁରିଗଲାପରେ କେହି କେହି ଲଥିକିନା ଭୂଇଁରେ ପଡ଼ିଯାନ୍ତି କିମ୍ୱା ଅସ୍ଥିରତାବଶତଃ ପାଦଏଣେତେଣେ ପଡ଼ିଯାଏ ।

ଦ୍ୱିପଦ ଅବସ୍ଥାରେ ଆମ ଶରୀରର ମାଧ୍ୟାକର୍ଷଣ କେନ୍ଦ୍ର ସଂକୀର୍ଣ୍ଣ ହୋଇଥିବା ହେତୁ ଆମଠାରେ ଅସ୍ଥିରତା ରହିବା ସ୍ୱାଭାବିକ ।

ଆମ ଶରୀରରେ ଏଭଳି ଅସୁବିଧାକୁ ଏଡ଼ାଇ ଭାରସାମ୍ୟ ରଖିବା ଲାଗି ଆମ କର୍ଣ୍ଣ ମଧ୍ୟରେ ଥିବା ଭେଷ୍ଟିବୁଲାର ଅର୍ଗାନ ଭିତରେ ଏକ ପ୍ରକାର ରସ ଥାଏ । ଆମ ଶରୀରର ଭାରସାମ୍ୟ ରକ୍ଷାଲାଗି ଏହି ରସ ମସ୍ତିଷ୍କକୁ ଖବର ଜଣାଏ । ଆମର ଅନୁମସ୍ତିଷ୍କ ଶରୀରର ବିଭିନ୍ନ ପ୍ରକାର ସଂସ୍ଥିତି ଓ ଭାରସାମ୍ୟ ରକ୍ଷାକରିବାରେ ପେଶୀମାନଙ୍କୁ ନିୟନ୍ତ୍ରଣ କରିଥାଏ । ଫଳରେ ଆମେ ଚଲାବୁଲାରେ ପଡ଼ିନଯାଇ ସ୍ଥିରତା ରକ୍ଷା କରିପାରୁ । କିନ୍ତୁ ଆମେ ବେଶି ସମୟ ଧରି ଘୂରିବାବେଳେ ମୁଣ୍ଡ ହଲିବା ଯୋଗୁଁ ଭେଷ୍ଟିବୁଲାର ଅର୍ଗାନ ମଧ୍ୟସ୍ଥ ରସ ଚହଲିଯାଏ । ମସ୍ତିଷ୍କ ଓ ଶରୀରର ଅବସ୍ଥିତି ପ୍ରତି ମୁହୂର୍ତ୍ତରେ ବଦଳୁଥାଏ । ଘୂରିବାବେଳେ ବାରମ୍ୱାର ବଦଳୁଥିବା ଶାରୀରିକ ଅବସ୍ଥିତିରେ ଥରକୁ ଥର ଏହି ରସ ମସ୍ତିଷ୍କକୁ ଭାରସାମ୍ୟ ରକ୍ଷାଲାଗି ଖବର ଦିଏ । ମସ୍ତିଷ୍କ ଗୋଟିଏ ନିର୍ଦ୍ଦିଷ୍ଟ ଅବସ୍ଥାଲାଗି ଭାରସାମ୍ୟ ରଖୁ ରଖୁ ମସ୍ତିଷ୍କ ତଥା ଶରୀରର ସ୍ଥାନ ବଦଳିଯାଇ ଆଉ ଏକ ଅବସ୍ଥା ସୃଷ୍ଟି କରିଥାଏ । ଏଭଳି ବାରମ୍ୱାର ପରିବର୍ତ୍ତିତ ପରିସ୍ଥିତିରେ ଭେଷ୍ଟିବୁଲାର ଅର୍ଗାନ୍‌ର ରସର ସଙ୍କେତ ଏବଂ ମସ୍ତିଷ୍କର ଭାରସାମ୍ୟ ରକ୍ଷା ମଧ୍ୟରେ ଉପଯୁକ୍ତ ବୁଝାମଣାର ସମନ୍ୱୟ ରହେନା । ତେଣୁ ଆମେ ନିଜକୁ ସମ୍ଭାଳି ନପାରି ପଡ଼ିଯାଉ ।

# କେତେକ ଫୁଲ ବାସନାଯୁକ୍ତ ମାତ୍ର ଆଉ କେତେକ ଫୁଲର ବାସନା ନଥାଏ କାହିଁକି ?

ବିଭିନ୍ନ ଉଦ୍ଭିଦ ମାନଙ୍କରେ ଭିନ୍ନ ଭିନ୍ନ ଗୁଣ ପ୍ରକଟିତ ହୋଇଥାଏ । ଏହା ତାଙ୍କର ବଂଶାନୁକ୍ରମିକ ଗୁଣ । ସେହିପରି କେତେକ ଫୁଲ ତଥା ପତ୍ର ବାସନାଯୁକ୍ତ । ଫୁଲର ପାଖୁଡ଼ା ତଥା ପତ୍ରରେ ଏକପ୍ରକାର ମୌଳିକ ଉଦ୍‌ବାୟୀ ତୈଳ ଜାତୀୟ ପଦାର୍ଥ ଥିବା ଯୋଗୁଁ ଏହି ବାସନାଗୁଣ ପ୍ରକଟିତ ହୋଇଥାଏ । ଏହି ପ୍ରକାର ଉଦ୍‌ବାୟୀ ତୈଳ ଏକ ପ୍ରକାର ଗ୍ରନ୍ଥିରେ ସାଇତା ହୋଇଥାଏ ଏବଂ ଏହି ଗ୍ରନ୍ଥି ସବୁ ଗଛର ପତ୍ର ତଥା ଫୁଲର ପାଖୁଡ଼ାମାନଙ୍କରେ ଥାଏ, ଯଥା: ତୁଳସୀ, ଲେମ୍ବୁ, ଗୋଲାପ, ମଲ୍ଲୀ, ହେନା, କାମିନୀ, ରଜନୀଗନ୍ଧା, ଗଙ୍ଗଶିଉଳି, ଚନ୍ଦନ ଇତ୍ୟାଦି । ଏହି ଉଦ୍‌ବାୟୀ ତୈଳମାନଙ୍କ ମଧ୍ୟରେ ଚନ୍ଦନ ତେଲ, ଗୋଲାପ ତେଲ ଓ ଲବଙ୍ଗ ତେଲ ପ୍ରଧାନ ।

ସାଧାରଣତଃ ଆମେ ଦେଖୁ ରାତିରେ ଫୁଟୁଥିବା ଫୁଲଗଡ଼ିକ ସୁଗନ୍ଧଯୁକ୍ତ । ଏହାର କାରଣ ରାତିରେ ମହୁମାଛି ମହୁ ସଂଗ୍ରହ କରିବା ପାଇଁ ଆସିଲାବେଳେ ଫୁଲର ବାସନା ଜାଣି ସେଠାରେ ପହଞ୍ଚି ଯାଆନ୍ତି । ଏହି ଉଦ୍‌ବାୟୀ ତୈଳ ଯେଉଁ ଫୁଲରେ ନଥାଏ ସେଥିରେ ସାଧାରଣତଃ ବାସନା ନଥାଏ ।

କିନ୍ତୁ ସାଧାରଣତଃ ଅଧିକାଂଶ ଉଦ୍ଭିଦମାନଙ୍କରେ ସାମାନ୍ୟ ହେଲେ ମଧ୍ୟ କିଛି ନା କିଛି ଉଦ୍‌ବାୟୀ ତୈଳ ଥାଏ । ତେଣୁ କେତେକ ଫୁଲର ବାସନା ଆମର ଆଘ୍ରାଣ ଶକ୍ତିକୁ ଆସିଥାଏ । ଅନ୍ୟମାନଙ୍କର ବାସନା ଆମର ଆଘ୍ରାଣ ଶକ୍ତି ଗ୍ରହଣ କରିପାରେ ନାହିଁ ।

